# ଅଲଂକାରଚନ୍ଦ୍ରିକା

ଶ୍ରୀଯୁକ୍ତ ଭୁବନେଶ୍ୱର. ବଡ଼ପଣ୍ଡାଙ୍କ ଦ୍ୱାରା

ରଚିତ ହୋଇ

ଶ୍ରୀଯୁକ୍ତ ବାମଣ୍ଡାଧିପତି ସୁଢ଼ଳ ଦେବ

ଙ୍କ ଦ୍ୱାରା

ପ୍ରକାଶିତ ହେ. ହେଉ [illegible]

ବାମଣ୍ଡା

ଜଗନ୍ନାଥ ବଲ୍ଲଭ ପ୍ରେସରେ ମୁଦ୍ରିତ

ସନ୍ ୧୮୮୭ ମସିହା

# ଉପହାର

ମା ! ଚନ୍ଦ୍ରଭାଗା ! ତୋହରି ପିତା ରତ୍ନାକର, ତା ଭିନ୍ନ କିଏ ଅଳଂକାର ମର୍ଯ୍ୟାଦା ଜାଣିବ ? ତାହରି ଅଳଂକାର ଏକା କବି ହୃଦୟକୁ ଚମକାଉଛି ; ଅତଏବ ଏହି ପୁସ୍ତିକା ତୋହରି ଅଳଂକାରର ଞ୍ଜିୟକୀ ହୋଇ କବି ହୃଦୟର ଚାକଚକ୍ୟ ବିସ୍ତାର ରତଃ ଦିଗନ୍ତ ବ୍ୟାପିନୀ ହେଉ, ଏବଂ ଉତ୍କଳ ସହୃଦୟ ରସିକମାନଙ୍କର ଚନ୍ତନୀ ଶକ୍ତିର ସହ ାରିଣୀ ହୋଇ କବିତା ପ୍ରସୂନର ସୁମିଷ୍ଟ ସୁରଭି ପାଠକ ନ୍ଦରେ ବିତରଣ କରିବାକୁ ଅଗ୍ରସର ହେଉ ଏହିମାତ୍ର ଏକାନ୍ତ କାମନା ଇତି ।

ଗ୍ରନ୍ଥଧାମ ବାମଣ୍ଡା
୫ - ୧୦-୧୮୮୭



ପ୍ରକାଶକ

# ଅଳଂକାର ଚନ୍ଦ୍ରିକା

## ଗ୍ରଘ କଲ୍ଷା

ଅଥି ଅଲଂକାର ଏଥୁ ହୋଇବ ବର୍ଣ୍ଣିତ ।
ସମସ୍ତ ମତରେ ଯେହୁ ହୋଇଛି ସମ୍ମତ ।୧।
ଅନେକ ପ୍ରକାରେ ଏକ ଅଲଂକାରମାନ ।
ବହୁତଅଛନ୍ତି କିଛି କରିବା ଗ୍ରଥନ ।୨।
ଲକ୍ଷ୍ୟ ଲକ୍ଷଣସଂଗ୍ରହ ହୋଇବ ଏ ଗ୍ରନ୍ଥ ।
ଅଲଂକାର ମାଗେଁ କ୍ଲେଶ ନଲଭିବେପାନ୍ଥ ।୩।
ଚନ୍ଦ୍ରାଲୋକ ଗ୍ରନ୍ଥ ମୁଖ୍ୟ ଅଲଂକାର ମାନ ।
ଅନ୍ୟଠାରୁ କିଛି ଏଥି ହୋଇବ ବର୍ଣ୍ଣନ ।୪।

# ଅଲଙ୍କାର ଚନ୍ଦ୍ରିକା

ବିଷଦତା ମାତ୍ର ଏଥି ହେବ ପ୍ରୟୋଜନ ।
ଗ୍ରନ୍ଥସ୍ୱଭାବ କାଠିନ୍ୟ ଧୀରେ ଗୁଣଯେନ ।୫।

## ଉପମାଲଂକାର

କବି ସମ୍ମତ ସାଦୃଶ୍ୟ ଉପମା ହୁଅଇ ।
ଅସମ୍ମତ କୁମ୍ଭବାଦ ଉପମାନ ନୋହି ।୬।
ଉପମେୟ ଉପମାନ ତୁଲ୍ୟ ଧର୍ମ ସଙ୍ଗେ ।
ଉପମା ହୁଅଇ ପୂର୍ଣ୍ଣ ବାଚକର ଯୋଗେ ।୭।
ଉପମେୟ ମୁଖ ତହିଁ ଚନ୍ଦ୍ର ଉପମାନ ।
ତୁଲ୍ୟ ଧର୍ମ ଏଥିମଧ୍ୟେ ଆହ୍ଲାଦକ ଗୁଣ ।୮।
ଯଥା ଆଦି ଶବ୍ଦମାନ ହୁଅନ୍ତି ବାଚକ ।
ପୂର୍ଣ୍ଣା ଲୁପ୍ତା ଭେଦେ ଏହୁ ହୁଅଇ ଅନେକ ।୯।

ପୂର୍ଣ୍ଣୋପମାର ଉଦାହରଣ ଯଥା,

କୃଷ୍ଣାବର୍ତ୍ତି ବକ୍ଷ୍ୟେ ବିରାଜିଲେ ଶ୍ୟାମ ହାର ।
ପର୍ବତ ଶୃଙ୍ଗରେ ଏକ ଜମ୍ବୁଫଳ ପର ।୧୦।

# ଅଲଙ୍କାର ଚନ୍ଦ୍ରିକା

### ଲୁପ୍ତୋପମାଲଂକାର

ଧର୍ମି ବାଚକାଦି ଲୋପେ ହୁଏ ଲୁପ୍ତୋପମା ।
ଚନ୍ଦ୍ର ସୁନ୍ଦର ଇତ୍ୟାଦି ଜାଣ ତାର ସୀମା (୧) । ୧୧

### ଅନନ୍ୱୟାଲଂକାର

ବିଷୟ ବିଷୟୀ ଐକ୍ୟେ ଅନନ୍ୱୟ ନାମ ।
ସମୁଦ୍ର ପରି ସମୁଦ୍ର ଗ୍ରାମ ପରି ଗ୍ରାମ (୨) । ୧୨ ।

### ଉପମେୟୋପମାଲଂକାର

ଦୁଇପରି ଦୁଇହେଲେ ଅନ୍ୟର ଅଭାବେ ।
ଉପମେୟୋପମା ପୁଣ ଭଙ୍ଗିରେ ସମ୍ଭବେ । ୧୩ ।

---

(୧) "କାନ୍ତି ଦ୍ୱାରା ଚନ୍ଦ୍ରପରି ସୁନ୍ଦର" ଏପରି କୁହା ନଯାଇ କେବଳ ଚନ୍ଦ୍ର ସୁନ୍ଦର ବୋଲିବାରୁ ଏଠାରେ "ପରି" ବାଚକ, କାନ୍ତି ଏବଂ ବର୍ତ୍ତୁଳତ୍ୱାଦି ଧର୍ମ, ଲୁପ୍ତ ହୋଇଅଛି ।

(୨) ବିଷୟ ଉପମେୟ ବିଷୟୀ ଉପମାନ ଏଠାରେ ସମୁଦ୍ର ବିଷୟ, ବିଷୟୀ ରୂପରେ ଏକ ହୋଇଅଛି ।

ଘନପରି କୃଷ୍ଣ ଏହୁ ଘନ କୃଷ୍ଣ ପରି ।
ଶକ୍ର ଧନୂ ପରି ପିଛ ଧନୂ ପିଛ ପରି (୧) । ୧୪ ।

ପ୍ରଦୀପାଲଂକାର

ଉପମେୟ ପରି ଉପମାନ ହେଲେ ଉକ୍ତ ।
ପ୍ରଦୀପ ବୋଲି ତାହାକୁ କରନ୍ତି ବଖ୍ୟାତ । ୧୫ ।
ରମ୍ୟ ମୁଖପରି ଚନ୍ଦ୍ର ଶୋଭାକୁ ବହୁଛି ।
ବୃଥା ଗର୍ବମାନ ତାର ନଜାଣେ ଏ କିଛି (୨)। ୧୬ ।

ରୂପକାଲଂକାର

ଅନନ୍ୟ ହୋଇଲେ ତଦ୍ରୂପ ରୂପକ ହୁଅଇ ।
କୃପାଜଳ ବରଷିବେ କୃଷ୍ଣ ମେଘ ଏହୁ (୩) । ୧୭ ।

---

( ୧ ) ଅନନ୍ୟକୁ ତୁଚ୍ଛକରି କେବଳ ଦୁଇଜଣଙ୍କୁ ସମାନ ଧର୍ମଦ୍ୱାରା କହିବାର ।

( ୨ ) ଉପମାନ ଚନ୍ଦ୍ର ଉପମେୟ ରମ୍ୟ ମୁଖ ।

( ୩ ) ଅନନ୍ୟରେ କୃପା ଓ କୃଷ୍ଣ ଏଦୁହେଁ ଜଳଓମେଘ

# ଅଲଙ୍କାର ଚନ୍ଦ୍ରିକା

## ପରିଣାମାଲଂକାର

ଉପମାନ, ଉପମେୟ ରୂପ ବହୁ ଯେବେ ।
କାର୍ଯ୍ୟକରେ ପରିଣାମେ ସେଠାରେ ସମ୍ଭବେ। ୧୮ ।
କାର୍ଯ୍ୟମାନ ଶୁଭହେଲେ ପରମମଙ୍ଗଳା ।
ପ୍ରସନ୍ନ ନେତ୍ର ପଦ୍ମରେ ଦେଖନ୍ତି କମଳା (୧)। ୧୯

## ଉଲ୍ଲେଖାଲଂକାର

ଅନେକେ ଅନେକ ରୂପ ଏକକୁ ଦେଖନ୍ତି ।
ଉଲ୍ଲେଖ ନାମକ ତହିଁ ହୁଏ ଅଲଂକୃତ । ୨୦ ।
ବ୍ରହ୍ମବାଦୀଙ୍କର ବ୍ରହ୍ମ ଅସୁରଙ୍କ କାଳ ।
ଏକ କୃଷ୍ଣ ଦୃଶ୍ୟହେଲେ ବାଳକଙ୍କୁ ବାଳ (୨)। ୨୧।

---

ରୂପତାକୁ ପ୍ରାପ୍ତହେଲେ ।

( ୧ ) ଉପମାନ ପଦ୍ମ ସେ ଉପମେୟ ଯେ ନେତ୍ର ତଦ୍ରୂପରେ ରହି ଦର୍ଶନ କାର୍ଯ୍ୟକୁ କଲା ଯେଉଁହେତୁରୁ ପଦ୍ମରେ ଦର୍ଶନ କ୍ରିୟାର ଅସମ୍ଭବ ।

( ୨ ) ଏକ କୃଷ୍ଣ ନାନା ପ୍ରକାରରେ ଅର୍ଥାତ୍ ବ୍ରହ୍ମ ଓ

# ଅଲଙ୍କାର ଚନ୍ଦ୍ରିକା

## ସ୍ମରଣାଲଂକାର

ସଦୃଶ୍ୟ ସ୍ମୃତ ଯୋଗରୁ ହୁଅଇ ସ୍ମରଣ ।
ସୀତା ମୁଖ ଦେଖି ଭୃଙ୍ଗେଗଲେ ପଦ୍ମବନ । ୨୨ । (୧)

## ଭ୍ରାନ୍ତମଦଲଂକାର

ଭ୍ରାନ୍ତ ହୁଏ ଭ୍ରମ କାର୍ଯ୍ୟ ଯୋଗେ ଶଶିକର ।
ଦୁଗ୍ଧ ବୋଲି କପାଳରେ ଲେହିଲେ ମାର୍ଜାର । ୨୩ । (୨)

## ସନ୍ଦେହାଲଂକାର

ଏହନ୍ତି ସନ୍ଦେହ ମୁଖେ ଦୁଇ ତୁଲ୍ୟ ସିଦ୍ଧି ।
ନିର୍ଣ୍ଣିତ ନୁହଇ ଏଥି ଚନ୍ଦ୍ର ପଦ୍ମ ବୁଦ୍ଧି । ୨୪ । (୩)

---

ବାଳକ ଏବଂ କାଳ ଦେବତା ରୂପରେ ଦୃଶ୍ୟ ହେଲେ

( ୧ ) ସୀତାଙ୍କ ମୁଖରେ ପଦ୍ମ ସାଦୃଶ୍ୟ ଥିବାରୁ ପଦ୍ମର ସ୍ମରଣ ହେଲା ।

( ୨ ) ହାଣ୍ଡିରେ ଚନ୍ଦ୍ରକିରଣ ପଡଥିବାରୁ ଦୁଗ୍ଧ ବୋଲି ମାର୍ଜାରର ଭ୍ରମହେଲା ।

( ୩ ) ମୁଖ ଦେଖି ଚନ୍ଦ୍ର କି ପଦ୍ମ ବୋଲି ଯେଉଁ

# ଅଲଙ୍କାର ଚନ୍ଦ୍ରିକା

## ଅପହ୍ନବାଲଂକାର

ପ୍ରସିଦ୍ଧକୁ ନିଷେଧି ଅନ୍ୟ ରୂପରେ ଯେବେ ।
କହ ଅପହ୍ନବ ଅଲଂକାର ହୁଏ ତେବେ । ୨୫ ।
ନୁହଇ ଏ ଚନ୍ଦ୍ର ତେବେ ଅନ୍ୟ ଏ କ କହ ?
ସ୍ଫୁଟିତ ହୋଇଛି ବ୍ୟୋମ ଗଙ୍ଗା ସରୋରୁହ । ୨୬ । (୧)

## ଉତ୍ପ୍ରେକ୍ଷାଲଂକାର

ପ୍ରକୃତରେ ଅନ୍ୟରୂପେ ସମ୍ଭାବନା ଯେବେ ।
ହୁଅଇ ଉତ୍ପ୍ରେକ୍ଷା ନାମ ଅଲଂକାର ତେବେ । ୨୭ ।
ନଶାମୁଖେ ଅନ୍ଧକାର ମଣୁଅଛି ମୁହିଁ ।
କୋକ୍ଷ ବିରହ ଅନଳ ଧୂମ ସ୍ତୋମ ଏହି । ୨୮ । (୨)

---

ସନ୍ଦେହ ।

( ୧ ) ଚନ୍ଦ୍ରଙ୍କୁ ମିଥ୍ୟାକରି ସ୍ୱର୍ଗଙ୍ଗାର ପଦ୍ମ ରୂପରେ କଥନ ।

( ୨ ) ସନ୍ଧ୍ୟା କାଳୀନ ପ୍ରକୃତ ଯେ ଅନ୍ଧକାର ତାକୁ ଚକ୍ରବାକୀ ବିରହାନଳର ଧୂମସମୂହ ରୂପରେ ସମ୍ଭାବନା ।

# ଅଲଙ୍କାର ଚନ୍ଦ୍ରିକା

## ଅତଶଯ୍ୟୋକ୍ତ୍ୟଲଂକାର

ଅସମ୍ବନ୍ଧରେ ସମ୍ବନ୍ଧ ହୋଇଲେ ବର୍ଣ୍ଣନ ।
ଅତିଶୟ ଉକ୍ତି ନାମ ତାହାର ପ୍ରଧାନ । ୬୯ ।
ଏପୁରରେ ଯେତେ ସୌଧ ଅଛନ୍ତି ସକଳ ।
ଅଗ୍ରଭାଗେ ଛୁଇଁ ଛନ୍ତି ସେ ଚନ୍ଦ୍ର ମଣ୍ଡଳ । ୭୦ । (୧)

## ତୁଲ୍ୟ ଯୋଗିତାଲଂକାର

ବର୍ଣ୍ଣ୍ୟ ଅବର୍ଣ୍ଣ୍ୟ ଦୁହିଙ୍କ ତୁଲ୍ୟଧର୍ମ ଯେବେ ।
ଏକକାଳେ କହିରେ ତୁଲ୍ୟ ଯୋଗିତା ସମ୍ଭବେ । ୭୧ ।
ସୂର୍ଯ୍ୟ, ଅସ୍ତଗିରିତଟେ ଅଦୃଶ୍ୟ ହୋଇଲେ ।
ସରୋଜ ସ୍ୱୈରିଣୀମୁଖ ସଙ୍କୋଚ ଲଭିଲେ । ୭୨ । (୨)

---

ଜଗ୍‌ଗଲା ।

(୧) ସୌଧମାନଙ୍କର ଚନ୍ଦ୍ର ମଣ୍ଡଳ ସହିତରେ ସମ୍ବନ୍ଧ ନ ଥିଲେ ମଧ୍ୟ ସମ୍ବନ୍ଧ କଥନ ହେଲା ।

( ୨ ) ସରୋଜ ସଙ୍କୋଚ ବର୍ଣ୍ଣ୍ୟ , ସ୍ୱୈରିଣୀ ମୁଖ ସଙ୍କୋଚ ଅବର୍ଣ୍ଣ୍ୟ ଏହିଦଇ ସଙ୍କୋଚ ତୁଲ୍ୟଧର୍ମ ।

### ଦୀପକାଲଂକାର

ଏକ ଧର୍ମ ଅନ୍ୟଠାରେ ଯେବେ ଉପକାର ।
କରଇ ଦୀପକନାମ ହୁଏ ଅଲଂକାର । ୩୩ ।
ମଦ ଯୋଗରେ ପ୍ରବଳ ହୁଏ ଦନ୍ତାବଳ ।
ଉତ୍କଟ ପ୍ରତାପଚଯ୍ୟ ବଳେ ନରପାଳ । ୩୪ । (୧)

### ପ୍ରତିବସ୍ତୂପମାଲଂକାର

ବାକ୍ୟ ଦ୍ୱୟ ତୁଲ୍ୟ ଧର୍ମ ଯେବେ ରହେ ଛାଣ ।
ପ୍ରତିବସ୍ତୂପମା ବୋଲି କରନ୍ତି ପ୍ରମାଣ । ୩୫ ।
ଚନ୍ଦ୍ରାକୃତ ଧନୁ ମଧ୍ୟେ ଶୁଭଇ ଆନନ ।
ପରିବେଶ ମଧ୍ୟସ୍ଥିତ ସୁଧାଂଶୁ ସମାନ । ୩୬ । (୨)

---

( ୧ ) ହସ୍ତିଠାରେ କଥିତ ପ୍ରବଳତା ଧର୍ମ ନରପାଳ ଠାରେ ଉପକାରକଲା ।

( ୨ ) ଏଠାରେ ଏକ ବାକ୍ୟରେ ଚନ୍ଦ୍ରାକୃତ ଧନୁମଧ୍ୟସ୍ଥିତ ଶ୍ରୀମତୀଙ୍କ ମୁଖ, ଅପର ବାକ୍ୟରେ ମଣ୍ଡଳ ମଧ୍ୟସ୍ଥିତ ଚନ୍ଦ୍ର, ଏ ଦୁହିଙ୍କର ତୁଲ୍ୟଧର୍ମ ବାକ୍ୟ ଦ୍ୱୟରେ

## ଅଲଙ୍କାର ଚନ୍ଦ୍ରିକା

### ଦୃଷ୍ଟାନ୍ତାଲଂକାର

ଧର୍ମ୍ମ ପ୍ରତିଧର୍ମ୍ମ ଭାବେ ହୁଅଇ ଦୃଷ୍ଟାନ୍ତ ।
ତୁମ୍ଭେ ଏକା କୀର୍ତ୍ତିମନ୍ତ ଚନ୍ଦ୍ରକାନ୍ତିମନ୍ତ । ୩୭ । (୧)

### ନିଦର୍ଶନାଲଂକାର

ସଦୃଶ୍ୟଦୁଇ ବାକ୍ୟରେ ଐକ୍ୟ ଆରୋପଣ ।
ନିଦର୍ଶନା ବୋଲି ତାକୁ କହନ୍ତି ପ୍ରବୀଣ । ୩୮ ।
ଦାତା ଜନଠାରେ ଯାହା ବର୍ତ୍ତିଛି ସାଧୁତା ।
ସେହିଁ ସିନା ପୂର୍ଣ୍ଣ ଚନ୍ଦ୍ରେ କଳଙ୍କ ଶୂନ୍ୟତା । ୩୯ । (୨)

---

ଉଦାହରଣ ।

( ୧ ) କୀର୍ତ୍ତି, କାନ୍ତି, ଦୁହିଙ୍କର ଧର୍ମ୍ମ ପ୍ରତିଧର୍ମ୍ମ ଭାବ ହେଲା ।

( ୨ ) ଏକ ବାକ୍ୟରେ ଦାତାର ସାଧୁତା ଅପର ବାକ୍ୟରେ ଚନ୍ଦ୍ରନିଷ୍ଠ କଳଙ୍କଶୂନ୍ୟତା ଏଦୁହିଁଙ୍କର ଐକ୍ୟାରୋପଣହେଲା

# ଅଲଙ୍କାର ଚନ୍ଦ୍ରିକା

ବ୍ୟତିରେକାଳଂକାର
ଉପମେୟ ଯେବେ ଉପମାନରୁଁ ଅଧିକ ।
ହୁଅଇ ତହିଁରେ ଅଳଂକାର ବ୍ୟତିରେକ । ୪୦ ।
ଶ୍ରୀରାମ କୀର୍ତ୍ତି ସୁଧାଂଶୁ ନୁହଇ ଯେ କ୍ଷୀଣ ।
କଦାପି ନଲଭେ ଅସ୍ତ ହନେ ନୋହେ ମ୍ଲାନ । ୪୧। (୧)

ସ୍ୱଭାବୋକ୍ତ୍ୟଳଂକାର
ଜନରଞ୍ଜନ ହୁଅଇ ସ୍ୱଭାବ ଯହିଁ ।
ସ୍ୱଭାବୋକ୍ତି ଯେ ଅଳଂକାର ଶୋଭା ପାଏ ତହିଁ । ୪୨
ପଦ୍ମ ହିମ ସହଯୋଗେ କୀର୍ତ୍ତି ଜାତହେଲା ।
ଶୀତ ବର୍ଣ୍ଣ ସଦ୍‌ବତରେ ହଗନ୍ତ ଲୁଚଲା । ୪୩ । ( ୨ )

---

( ୧ ) ଚନ୍ଦ୍ରଙ୍କର କ୍ଷୟ ମ୍ଲାନ ଅଦର୍ଶନ ଥାଏ ଶ୍ରୀରାମଚନ୍ଦ୍ରଙ୍କର କୀର୍ତ୍ତି ଚନ୍ଦ୍ରରେ ଏସବ ନ ଥିବାରୁ ବ୍ୟତିରେକ ହେଲା ।
( ୨ ) ଯେଉଁ ସ୍ୱଭାବ ଶୁଣିବା ମାତ୍ରକେ ପ୍ରୀତିକର ହୁଏ ସେ ଅଳଂକାର ରୂପ ହୁଏ , ଅନ୍ୟଥା ପିତାସ୍ୱଭାବ

# ଅଲଙ୍କାର ଚନ୍ଦ୍ରିକା

## ବିନୋକ୍ତି ଅଲଂକାର

ବିନୋକ୍ତି ଅଲଂକାରକୁ ବିନାଯୋଗେ କହି ।
ବିନା ବିନୟରେ ବିଦ୍ୟା ବିଫଳ ହୁଅଇ ।୪୪

## ସମାସୋକ୍ତି ଅଲଂକାର

ପ୍ରସ୍ତୁତରେ ଅପ୍ରସ୍ତୁତ ଅର୍ଥି ଯେବେ ଭାସେ ।
ସମାସୋକ୍ତି ଅଲଂକାର ସେଠାରେ ପ୍ରକାଶେ । ୪୫
ଦୋଷାକର ନାମକୁ ଯେ ସଦାଅଛି ବହି ।
ଐନ୍ଦ୍ରୀମୁଖ ଚୁମ୍ବୁଅଛି ରକ୍ତଚନ୍ଦ୍ର ଏହି । ୪୬ । (୧)

---

ପୁଣି ଅଗତହେଲା ବୋଇଲେ ଏହି ସହଉକ୍ତି ଅଲଂକାରହେବ ନାହିଁ ।

( ୧ ) ପ୍ରକୃତ ବର୍ଣ୍ଣନ କରୁ୨ ଦୋଷାକର ରକ୍ତ ହୋଇ ଐନ୍ଦ୍ରୀମୁଖ ଚୁମ୍ବୁଅଛି ବୋଲିବାରୁ ପରବନିତା ସ୍ୱରୂପ ଅପ୍ରକୃତାର୍ଥ ପ୍ରକଟ ହେଲା ।

# ଅଲଙ୍କାର ଚନ୍ଦ୍ରିକା

## ପରିକରାଲଂକାର

ସାଭିପ୍ରାୟ ବିଶେଷଣେ ହୁଏ ପରିକର ।
ଚନ୍ଦ୍ରଶେଖର ଏ ଶିବ ହେବେ ତାପହର । ୪୭ । (୧)

## ପରିକରାଙ୍କୁରାଲଂକାର

ସାଭିପ୍ରାୟ ବିଶେଷ୍ୟରେ ପରିକରାଙ୍କୁର ।
ଏହି ଚତୁର୍ଭୁଜଦାତା ଚତୁର୍ବର୍ଗଙ୍କର । ୪୮ । (୨)

## ଅପ୍ରସ୍ତୁତ ପ୍ରଶଂସାଲଂକାର

ପ୍ରସ୍ତୁତ ନିମିତ୍ତେ ଅପ୍ରସ୍ତୁତ କଥନରେ ।
ଅପ୍ରସ୍ତୁତ ପ୍ରଶଂସା ହୁଅଇ ଜାଣ ନରେ । ୪୯ ।
ଶଙ୍ଖ ବିନା ଅନ୍ୟଙ୍କୁ ଯେ ଯାଚନା ନକରେ ।

---

(୧) ଚନ୍ଦ୍ରଶେଖର ଏହି ବିଶେଷଣ ତାପହରଣରେ ସାଭିପ୍ରାୟ ।

(୨) ବିଶେଷ୍ୟ ଚତୁର୍ଭୁଜ ଶବ୍ଦ, ଚତୁର୍ବର୍ଗ ଦାନରେ ସାଭିପ୍ରାୟ ।

# ଅଲଙ୍କାର ଚନ୍ଦ୍ରିକା

ପକ୍ଷୀକୁଳେ ସେ କୁଶଳ ବଞ୍ଚରନ୍ତୁ ଥୀରେ । ୫୦ । (୩)

ପ୍ରସ୍ତୁତାଙ୍କୁରାଲଂକାର

ପ୍ରସ୍ତୁତରେ ପ୍ରସ୍ତୁତାର୍ଥି ହୋଇଲେ ଦେଖାଉତ ।
ପ୍ରସ୍ତୁତ ଅଙ୍କୁର ତହିଁ ହୁଅଇ ବିଦିତ । ୫୧
ଭୃଙ୍ଗ ତୋହୋର ମାଲତୀ ଲାଭହେଲା ଯେବେ ।
ଦୁଃଖଦ କେତକୀ ସଙ୍ଗ କି ଲଭିବୁ ତେବେ । ୫୨ । (୧)

ପର୍ଯ୍ୟାୟୋକ୍ତ୍ୟଲଂକାର

ଗମ୍ୟଅର୍ଥ ମିଳେ ଯହିଁ ବଚନ ଭଙ୍ଗିରେ ।

---

( ୩ ) ହୀନ ଯାଚନା କରଣୀୟ ନହେ ଏହି ପର ପ୍ରସ୍ତୁତ କହିବା ନିମିତ୍ତ ଅପ୍ରସ୍ତୁତ ଚାତକର ବର୍ଣ୍ଣନ ।

( ୧ ) ପ୍ରସ୍ତୁତ ( ସ୍ୱତଃସିଦ୍ଧ ) ମାଲତୀ ସ୍ୱରୂପ ସ୍ୱ ବନିତା ଲାଭ ହେଲା ଉତ୍ତାରୁ କଣ୍ଟକାକୁଳ ( ଦୁଃଖଦ ) କେତକୀ ରୂପ ପରବନିତାରେ କି ପ୍ରୟୋଜନ ; ଏଥିରେ ପରବନିତା ପରିତ୍ୟାଗ ପ୍ରସ୍ତୁତାର୍ଥ ।

ପର୍ଯ୍ୟାୟୋକ୍ତି ଅଳଂକାର ହୁଅଇ ଭଙ୍ଗିରେ ।୫୩।
ଅଋନାଶୀଳଲାଠରୁ ଯେ ସିନ୍ଦୂରଦୂର ।
କର ପାରନ୍ତୁ ଜଗତେ ସେହୁ ବୀରେଶ୍ୱର (୧) ।୫୪।

ବ୍ୟାଜସ୍ତୁତି ଅଳଂକାର

ନିନ୍ଦାରୁ ହୋଇଲେ ସ୍ତୁତି ବ୍ୟାଜ ସ୍ତୁତି ହୋଇ ।
ସ୍ତୁତିରୁ ନିନ୍ଦା ହୋଇଲେ ଅଳଂକାର ସେହି ।୫୫।
ପାପିଙ୍କି ନେଉଛ ସ୍ୱର୍ଗ, ଗଙ୍ଗେ ! ଏହି ଧର୍ମ ।
ତୁମ୍ଭରତ. ବଡ଼ ବୁଦ୍ଧି ନାହିଁ ତୁମ୍ଭ ସମ ।୫୬। (୨)

---

(୧) ବଚନ ଚାତୁରୀଦ୍ୱାର୍ ବୋଧନୀୟାର୍ଥର ଲଭ; ଏଠାରେ ଶତ୍ରୁ ଜୟ ଗମ୍ୟାର୍ଥ ।

(୨) ବ୍ୟାଜ ସ୍ତୁତି ଦୁଇପ୍ରକାର; ୧ ମ, ୨ ୟ ତୁମ୍ଭରତ ବଡ଼ ବୁଦ୍ଧି ଏପର ସ୍ତୁତିରୁ ସ୍ଥୂଳ ବୁଦ୍ଧି ରୂପ ନିନ୍ଦା ବ୍ୟକ୍ତ ହେଲା ।

ନିନ୍ଦାରୁ ସ୍ତୁତି ଯଥା, ହେ ଗଙ୍ଗେ ! ତୁମ୍ଭ ସମାନ ପାପ ହରଣକରିବା ବ୍ୟକ୍ତି ନାହାନ୍ତି ଏହି ସ୍ତୁତି

# ଅଲଙ୍କାର ଚନ୍ଦ୍ରିକା

## ବ୍ୟାଜ ନିନ୍ଦାଲଂକାର

ନିନ୍ଦା ଦ୍ୱାରା ନିନ୍ଦା ଯେବେ ହୁଅଇ ବିଦିତ ।
ବ୍ୟାଜ ନିନ୍ଦା ଅଲଂକାର ହୁଅଇ ବିଖ୍ୟାତ । ୫୭ ।
କମଳାସନ ! ତୁମ୍ଭର ପୂର୍ବେ ଏକ ଶିର ।
ଛେଦିଲେ ଯେ ସେହୁ ନିନ୍ଦ୍ୟସିନା ଏକ ହର (୧) ।୫୮।

## ଆକ୍ଷେପାଲଂକାର

ନିଜ ବଚନ ନିଷେଧ କରେ ବକ୍ତା ଯେବେ ।
ଆକ୍ଷେପ ନାମକ ଅଲଂକାର ହୁଏ ତେବେ । ୫୯ ।

---

ବ୍ୟକ୍ତ ହେଲା ।

( ୧ ) ଶିବ ଯାହା ଗୋଟିଏ ଶିର ଛେଦନ କଲେ ସେହୁ ହେତୁରୁ ନିନ୍ଦ୍ୟ ହେଲେ ଅର୍ଥାତ୍ ସମସ୍ତ ଶିର ଯଦି ଛେଦନ କରିଥାନ୍ତେ ତେବେ ସୃଷ୍ଟି କରଣ ଦ୍ୱାରା ଲୋକମାନଙ୍କର ଦୁଃଖମୟ ସଂସାର ଯାତନା ହୋଇ ନଥାନ୍ତା ।

## ଅଳଂକାର ଚନ୍ଦ୍ରିକା

ଚନ୍ଦ୍ର ! ଦର୍ଶନକୁ ଦେଇ କର ଉପକାର ।
ଥାଅ ଥାଅ ହେବ ପ୍ରିୟାମୁଖ ଦେଖିବାର । ୭୦ । (୧)

### ବିରୋଧାଭାସାଲଂକାର

ବିରୋଧ ଜନ୍ମିଲେ ବାକ୍ୟେ ବିରୋଧ ଆଭାସ ।
ପରିହାର କର ତାର କରନ୍ତି ଉଲ୍ଲାସ । ୭୧ ।
ତେଜରେ ମିତ୍ର ବିଜୟୀ ଅମିତ୍ର ବିଜୟୀ ।
ବିଚିତ୍ର ଚକ୍ଷୁ ଏ ନୃପ ଚାରଚକ୍ଷୁ ଏହି । ୭୨ । (୨)

### ବିଭାବନାଲଂକାର

ବିନା କାରଣରେ କାର୍ଯ୍ୟ ହୋଇଲେ ଉତ୍ପନ୍ନ ।
ବିଭାବନା ଅଳଂକାର ବିଚିତ୍ର ନିପୁଣ । ୭୩ ।

---

( ୧ ) ତାତ୍ପର୍ଯ୍ୟ ଏହି ଯେ ତୁମ୍ଭଙ୍କ ବିନିମିତ୍ତ ପ୍ରାର୍ଥନା କରିବାଁ ଅମ୍ଭଙ୍କୁ ଅଧିକ ବ୍ୟକ୍ତି ମିଳି ପାରିବେ ।

( ୨ ) ଯେ ମିତ୍ର ବିଜୟୀ ସେ ଅମିତ୍ର ବିଜୟୀ ଏ ବିରୋଧ, ମିତ୍ର, ସୂର୍ଯ୍ୟ; ଅମିତ୍ର, ଶତ୍ରୁ; ଏ ଅବିରୋଧ; ଚାର ଚକ୍ଷୁ ବିଚିତ୍ର ଚକ୍ଷୁ ବିରୋଧ; ବିଚିତ୍ର ଦର୍ଶୀ ଏତାଦୃଶ ଅର୍ଥରେ ଅବିରୋଧ ।

ଲାକ୍ଷାରସ ବ୍ୟତିରେକେ ତୁମ୍ଭର ଚରଣ ।
ରକ୍ତ ହୋଇଅଛୁ ଏହୁ ଅତ୍ୟନ୍ତ ଶୋଭନ । ୬୪ । (୧)

### ବିଶେଷୋକ୍ତି ଅଲଂକାର

କାରଣ ସତ୍ୱରେ କାର୍ଯ୍ୟ ହେଲେ ଅନୁତ୍ପନ୍ନ ।
ବିଶେଷୋକ୍ତି ଅଲଂକାର ଜାଣ ବିଜ୍ଞଜନ । ୬୫ ।
ହୃଦୟରେ ସ୍ମରଦୀପ ସଦା ଜଳୁ ଅଛୁ ।
ସ୍ନେହ କ୍ଷୟ କଦାଚନ ତଥାପି ନୋହୁଛୁ । ୬୬ ।(୨)

### ଅସମ୍ଭବାଲଂକାର

ଅସମ୍ଭାବ୍ୟର ବର୍ଣ୍ଣନେ ହୁଏ ଅସମ୍ଭବ ।
ପର୍ବତ ଟେକିବ ଶିଶୁ ଏହା କେ କହିବ । ୬୭ ।

---

(୧) ଚରଣ ରକ୍ତତାକୁ ପ୍ରତି ଲାକ୍ଷାରସ କାରଣ ତ-
ଦ୍ବ୍ୟତିରେକେ ଚରଣର ରକ୍ତିମା ବର୍ଣ୍ଣନ ।
(୨) ଦୀପ ଜ୍ୱଳନ ରୂପ କାରଣଥାଇ ସ୍ନେହ କ୍ଷୟ
କାର୍ଯ୍ୟ ନୋହିଲା ।

## ଅସଙ୍ଗତ ଅଳଂକାର

କାର୍ଯ୍ୟହେତୁ, ବିଭ୍ରେଧରେ ହୁଏ ଅସଙ୍ଗତ ।
ଅନଙ୍ଗେ ଚୁମ୍ବିଲ୍‌ମନ ନେଇ ଗଲ୍‌ ଚନ୍ଦ୍ର ।୬୮। (୧)

## ବିଷମାଲଂକାର

ଅନନୁରୂପ ଘଟନେ ହୁଅଇ ବିଷମ ।
କାହିଁ ସୀତାପାଦ କାହିଁ ଅରଣ୍ୟ ଦୁର୍ଗମ ।୬୯।

## ସମାଲଂକାର

ଅନୁରୂପ ଘଟନାରେ ସମ ଅଲଂକାର ।
ସରସ୍ୱତୀ ବକ୍ଷସ୍ଥଳେ ଶୋଭେ ମୁକ୍ତାହାର ।୭୦।

## ବିଚିତ୍ରାଲଂକାର

ବିପରୀତ ପ୍ରଯତ୍ନେ ସେ ବିଚିତ୍ର ଜାଣ ।
ଉନ୍ନତ ଲଭିବା ପାଇଁ ନମନ୍ତି ସଜ୍ଜନ ।୭୧। (୨)

---

(୧) ହେତୁ ଏକଠାରେ ଥାଇ ଅନ୍ୟଠାରେ କାର୍ଯ୍ୟକରଣ
ଯଥା, ଅନଙ୍ଗ ଚୁମ୍ବିଲେ ମନ ଚୁମ୍ବିଲ୍‌ ନେଇଚନ୍ଦ୍ରଗଲ ।
(୨) ନମନ ( ନମ୍ରତା ) ରୁ ଉନ୍ନତ ରୂପ ବିଚିତ୍ର

# ଅଲଂକାର ଚନ୍ଦ୍ରିକା

## ଅଧିକାଲଂକାର

ପୃଥୁଳ ଆଧାରଠାରୁ ଅଧେୟ ଅଧିକ ।
ହୋଇଲେ ଅଲଂକାରକୁ କହନ୍ତି ଅଧିକ । ୭୨ ।
ସକଳ ବ୍ରହ୍ମାଣ୍ଡ ଯେଉଁ ଜଳରେ ରହିଲେ ।
ସମ ନୋହି ତୁମ୍ଭ ଗୁଣ ଅନ୍ତର୍ କ ହେଲେ । ୭୩ । (୧)

## ଅଲ୍ପାଲଂକାର

ସୂକ୍ଷ୍ମ ଅଧେୟ ହେବାରୁ ଯେ ସୂକ୍ଷ୍ମ ଆଧାର ।
ବର୍ଣ୍ଣିତ ହୁଅଇ ତହିଁ ଅଳ୍ପ ଅଲଂକାର । ୭୪ ।
ମଣି ଖଚିତ ମୁଦ୍ରିକା କରହିଣୀ କରେ ।
ରହିଲାଣି ଅସି ଜପମାଳିକା ପ୍ରକାରେ । ୭୫ । (୨)

---

ଫଳ ଲଭ ହେଲା ।

(୧) ତୁମ୍ଭ ଗୁଣ ରୂପ ଅଧେୟ ବ୍ରହ୍ମାଣ୍ଡ ଆଧାରରୁ ଅଧିକ ହେଲା ।

(୨) ଙ୍ଗୁଳୀ ଆଧାର କୃଶ ହେବାରୁ ମୁଦ୍ରିକାରୂପ ଅଧେୟ ଜପମାଳା ହେଲା ।

## ଅଲଂକାର ଚନ୍ଦ୍ରିକା

### ଅନ୍ୟୋନ୍ୟାଲଂକାର

ଅନ୍ୟୋନ୍ୟ ହୁଅଇ ପରସ୍ପର ଉପକାରେ ।
ଚନ୍ଦ୍ରଦ୍ୱାରେ ଶୋଭେ ଶର୍ବରୀ ଚନ୍ଦ୍ରମା ଶର୍ବରୀରେ । ୭୬ ।

### ବିଶେଷାଲଂକାର

ସିଦ୍ଧ ଆଧାର ନ ଥାଇ ଆଧେୟ ଯହିଁରେ ।
ରହଇ ବିଶେଷ ତହିଁ ଅଲଂକାର ସ୍ଫୁରେ । ୭୭ ।
ସୂର୍ଯ୍ୟ ଅସ୍ତ ହେଲେ ଦେଖ ତାହାଙ୍କ କିରଣ ।
କରନ୍ତି ଦୀପରେ ରହି ତିମିର ହରଣ । ୭୮ । (୧)

### ବ୍ୟାଘାତାଲଂକାର

ଯାହା ଦ୍ୱାରେ ଯେଉଁ କାର୍ଯ୍ୟ ଉପୁଜଇ ନାହିଁ ।
ତଦ୍ୱାରେ ସେ କାର୍ଯ୍ୟ ହେଲେ ବ୍ୟାଘାତ ହୁଅଇ । ୭୯ ।
ଯେଉଁ ପୁଷ୍ପଦ୍ୱାରେ ଜନେ ହୁଅନ୍ତି ସୁଖିତ ।
ତଦ୍ୱାରେ କନ୍ଦର୍ପ କରେ ବିରହୀଙ୍କି ହତ । ୮୦ । (୨)

---

(୧) ସୂର୍ଯ୍ୟ ଆଧାର, ତାହାଙ୍କ କିରଣ ଆଧେୟ ।
(୨) ଯେଉଁ କାର୍ଯ୍ୟରେ ସୁଖ ହୁଏ ସେଥିରେ ପ୍ରାୟ ଦୁଃଖ

### କାରଣମାଳାଳଂକାର

ପୂର୍ବ ପୂର୍ବ କାରଣେ କାରଣ ମାଳା ଏହୁ ।
ନ୍ୟାଯେ ଲକ୍ଷ୍ମୀ ତହୁଁ ତ୍ୟାଗ ତ୍ୟାଗୁଁ ଯଶ ହୋଇ । ୮୧ ।

### ଏକାବଳୀଅଳଂକାର

ଗୃହୀତ ମୁକ୍ତ ରୀତରେ ଅର୍ଥ ଶ୍ରେଣୀ ଯେବେ ।
ବର୍ଣ୍ଣିତ ହୁଅଇ ଏକାବଳୀ ହୁଏ ତେବେ । ୮୨ ।
ନେତ୍ର କର୍ଣ୍ଣ ପର୍ଯ୍ୟନ୍ତରେ ବିଶାଳ ହୋଇଛି ।
କର୍ଣ୍ଣ ସ୍ପୃଶ୍ୟ ବାହୁ ମୂଳ ପର୍ଯ୍ୟନ୍ତେ ଲମ୍ବିଛି । ୮୩ ।
ବାହୁସ୍ପୃଶ୍ୟ ଜାନୁ ପର୍ଯ୍ୟନ୍ତରେ ପ୍ରସରିଛି ।
ଜାନୁ ସ୍ପୃଶ୍ୟ ରତ୍ନ ଦର୍ପଣକୁ ଜିଣି ଅଛି । ୮୪ । (୧)

---

ହୁଏନାହିଁ ଏଠାରେ ସୁଖାସ୍ବାଦ ପୁଷ୍ପ ଦ୍ୱାର୍ ଦୁଃଖ ହେଲା ।

(୧) ପ୍ରଥମରୁ ଯେଉଁ ଅର୍ଥକୁ ଗ୍ରହଣ କରିଥିବ ତାକୁ ତ୍ୟକ୍ତ କରି ଅନ୍ୟାନ୍ୟ ଅର୍ଥକୁ ଗ୍ରହଣ କରିବା ।

### ମାଳାଦୀପକାଲଂକାର

ଏକାବଳୀ ଦୀପକ ଦୁହଙ୍କ ଯୋଗଯେବେ ।
ହୁଅଇ ମାଳାଦୀପକ ଅଳଂକାର ତେବେ । ୮୫ ।
ତାହା ହୃଦୟରେ ଅସି ରହ ଅଛୁ ସ୍ମର ।
ସେ ହୃଦୟ ତୁମ୍ଭଠାରେ କରୁଛୁ ସଂଗ୍ର । ୮୬ ।

### ସାର୍ଲଂକାର

ଉତ୍ତର ଉତ୍ତରେ ଯହିଁ ଉତ୍କର୍ଷ ସ୍ଫୁରଇ ।
ସାର ଅଳଂକାର ତହିଁ ପ୍ରକଟ ହୁଅଇ । ୮୭ ।
ମଧୁ ମଧୁର ତହିଁରୁ ପିୟୁଷ ମଧୁର ।
ତାହା ଅପେକ୍ଷାରୁ ପୁଣି କବିଜନ ଗୀର । ୮୮ ।

### ଯଥା ସଂଖ୍ୟାଲଂକାର

ଯହିଁ କ୍ରମ ଦ୍ୱାରା ହୋଏ କ୍ରମିକ ବିସ୍ତର ।
ତହିଁ ପ୍ରକାଶଇ ଯଥାସଂଖ୍ୟ ଅଳଂକାର । ୮୯ ।
ଶତ୍ରୁ ମିତ୍ର ବିପତ୍ତିରେ ତୁମ୍ଭେ ନରେଶ୍ୱର ! ।
ଜୟ ରଞ୍ଜନ ଭଞ୍ଜନ ଏତେ କମିକର । ୯୦ ।

ପର୍ଯ୍ୟାୟାଲଂକାର

ଏକର ଅନେକ ସ୍ଥାନ ହୋଇଲେ ସଂଶ୍ରୟ ।
ହୁଅଇ ଭଙ୍ଗୀରେ ଅଲଂକାର ଯେ ପର୍ଯ୍ୟାୟ । ୯୧ ।
ଯେଉଁ ମୁଖ ପ୍ରଭା ଥିଲା ଦିବସେ ପଦ୍ମରେ ।
ଏବେ ଆସି ରହିଲାଣି ସେ ପୂର୍ଣ୍ଣ ଚନ୍ଦ୍ରରେ । ୯୨ । (୧)

ପରିବୃତ୍ତି ଅଲଂକାର

ନ୍ୟୂନାଧିକ ବିନିମୟରେ ହୋଏ ପରିବୃତ୍ତି ।
ଶରକ୍ଷେପ କରି ଗ୍ରୀବା ଆଣିଲେ ସମ୍ପତ୍ତି । ୯୩ । (୨)

ପରିସଂଖ୍ୟାଲଂକାର

ଏକ ସ୍ଥାନରୁ ନିଷେଧି ଅନ୍ୟ ସ୍ଥାନେ ଯେବେ ।
ପଦାର୍ଥ ସ୍ଥାପିତ ହୋଏ ପରିସଂଖ୍ୟା ତେବେ । ୯୪ ।

---

(୧) ଏକ ମୁଖଶୋଭା; ପଦ୍ମ ଏବଂ ପୂର୍ଣ୍ଣଚନ୍ଦ୍ର ପ୍ରଭୃତି ଅନେକ ସ୍ଥାନରେ ଆଶ୍ରୟ କଲା ।

(୨) ଶରରୂପ ନ୍ୟୂନ ପଦାର୍ଥ ପ୍ରଦାନକରି ସମ୍ପତ୍ତି ରୂପ ଅଧିକ ପଦାର୍ଥର ଅନୟନ ।

ସ୍ନେହ କ୍ଷୟ ପ୍ରବାସରୁ ବିଶେଷେ ହୁଅଇ ।
କାମିନୀଜନଚିତ୍ତରୁ କଦାପି ନୋହଇ । ୯୫ ।

ବିକଳ୍ପାଲଂକାର

ରୁଦ୍ଧ ବଳ ବିରୋଧରେ ହୁଅଇ ବିକଳ୍ପ ।
ନମ୍ର କରନ୍ତୁ ଅରାତି ଶିର ଅବା ଚାପ । ୯୬ । (୧)

ସମୁଚ୍ଚୟାଲଂକାର

ଏକ କାଳରେ ଅନେକ କ୍ରିୟାର ପ୍ରଚାର ।
ବର୍ଣ୍ଣିଲେ ହୁଅଇ ସମୁଚ୍ଚୟ ଅଲଂକାର । ୯୭ ।
ତୁମ୍ଭ ଶତ୍ରୁ ମାନେ ଭୟେ କମ୍ପନ୍ତି ଲୁଚନ୍ତି ।
ବନେ ଫଳ ଭକ୍ଷନ୍ତି ସେ ଏକାନ୍ତେ ବସନ୍ତି । ୯୮ । (୨)

---

(୧) ଶିରେ ନମ୍ରକଲେ ଚାପ ନମ୍ର କରିବ ନାହିଁ ଅର୍ଥାତ୍ ଶରଣାଗତ ହେବ; ଚାପ ନମ୍ର କଲେ ଶିର ନମ୍ର କରି ଆବଶ୍ୟକ ନାହିଁ ଅର୍ଥାତ୍ ଯୁଦ୍ଧ କରିବ; ଏହି ରୁଦ୍ଧ ବଳର ବିରୋଧ ଅର୍ଥାତ୍ ଏଦୁଇ କାର୍ଯ୍ୟରୁ ଏକ କାର୍ଯ୍ୟ କରଣୀୟ ।

(୨) ଏଠାରେ କମ୍ପନ୍ତି ଲୁଚନ୍ତି ଭକ୍ଷନ୍ତି ପ୍ରଭୃତି ଅନେକ

## ସମାଧି ଅଳଂକାର

ଅନ୍ୟ କାରଣ ଯୋଗରୁ ହେଲେ କାର୍ଯ୍ୟ ସିଦ୍ଧି ।
ଜାଣ ତହିଁରେ ସୁବନ୍ଧ ହୁଅଇ ସମାଧି । ୯୯ ।
କୁଳଟାର ଉତ୍କଣ୍ଠିତ ହୋଇଥିଲା ମନ ।
ଏହି ସମୟରେ ଅସ୍ତ ହେଲେ ଭାନୁ ମାନ । ୧୦୦ ।(୧)

## ପ୍ରତ୍ୟନୀକାଳଂକାର

ବଳିଷ୍ଠ ଜଣେ ନପାରି ତା, ପକ୍ଷ ବର୍ଗରେ ।
ପରାକ୍ରମ କଲେ ତହିଁ ପ୍ରତ୍ୟନୀକ ସୂତ୍ରରେ । ୧୦୧ ।
ନୀଳଉତ୍ପଳ, ନେତ୍ରକୁ ଜିଣି ନ ପାରିଲା ।
ତାର ସଙ୍ଗୀ କର୍ଣ୍ଣକୁ ସେ ଅଧଃକୃତ କଲା । ୧୦୨ ।(୨)

---

କ୍ରିୟାର ବିନ୍ୟାସ ହେଲା ।
(୧) ସୂର୍ଯ୍ୟାସ୍ତ ହେବା କାରଣରୁ କୁଳଟାର ଉତ୍କଣ୍ଠା ସିଦ୍ଧି
(୨) ନୀଳୋତ୍ପଳ କର୍ଣ୍ଣ ଉପରେ ଯାହାରିକି ଅଛି ସେ କର୍ଣ୍ଣକୁ ତିରସ୍କୃତ କରୁଅଛି ।

# ଅଲଂକାର ଚନ୍ଦ୍ରିକା

## କାବ୍ୟାର୍ଥାପତ୍ତ୍ୟଲଂକାର

କୈମୁତିକ ନ୍ୟାୟେ କାବ୍ୟ ଅର୍ଥାପତ୍ତି ହୋଇ ।
ଚନ୍ଦ୍ରକୁ ଜିଣିଛି ମୁଖ ପଦ୍ମେ କିବା କହ ।୧୦୩। (୧)

## କାବ୍ୟଲିଙ୍ଗାଲଂକାର

ପଦାର୍ଥ ହେତୁ ହୋଇଲେ କାବ୍ୟ ଲିଙ୍ଗ ନାମ ।
ମୋର ଚିତ୍ତେ ବିଲୋଚନ ଜିତ ହେଲୁ କାମ ୧୦୪ (୨)

## ଅର୍ଥାନ୍ତର ନ୍ୟାସାଲଂକାର

ଉକ୍ତି ସାମାନ୍ୟ ବିଶେଷେ ଅର୍ଥାନ୍ତର ନ୍ୟାସ ।
ମାରୁତି ତରିଲେ ଅବ୍ଧି ଦୃଢ଼େ କି ଆୟାସ ।୧୦୫।(୩)

---

(୧) ଯେ ମୁଖ ଚନ୍ଦ୍ରଙ୍କୁ ଜିଣି ଅଛି ସେ ପଦ୍ମକୁ ଜିଣିବାର ଆଶ୍ଚର୍ଯ୍ୟ କି ?

(୨) ବିଲୋଚନ ପଦର ଅର୍ଥ ଶିବ, ସେ କନ୍ଦର୍ପ-ଜୟର ହେତୁ

(୩) ହନୁମାନଙ୍କର ସମୁଦ୍ର ତରଣ ବିଶେଷ, ଦୃଢ଼େ (ବଳିଷ୍ଠେ) କି ଶ୍ରମ, ଏ ସାମାନ୍ୟ ।

### ବିକସ୍ୱରାଲଂକାର

ବିଶେଷ ସାମାନ୍ୟ ହୋଇ ପୁନଶ୍ଚ ବିଶେଷେ ।
ବିକସ୍ୱର ଅଲଂକାର ସେଠାରେ ବିଲସେ ।୧୦୬।
ସେ ଗ୍ରହ୍ଣା ନୋହିଲେ ଜଡ ବଳିଷ୍ଠେ ଦୁର୍ଜ୍ଞେୟ ।
ସମୁଦ୍ର ପରି ଦୁର୍ଦ୍ଧର୍ଷ ମହାଜନ ଚୟ ।୧୦୭। (୧)

### ପ୍ରୌଢ଼ୋକ୍ତ୍ୟଲଂକାର

ଉତ୍କର୍ଷର ଅହେତୁରେ ଯେବେ ତାର ଉକ୍ତି ।
ସେହିଠାରେ ଅଲଂକାର ହୋଏ ପ୍ରୌଢ଼ଉକ୍ତି ।୧୦୮।
କେଶ କଳିନ୍ଦଜାତୀର ତମାଲ ସନ୍ତତ ।
ପରିଷ୍ଟେ ହୋଇ ଅଛନ୍ତି ଏମେଚକ କାନ୍ତି ।୧୦୯। (୨)

---

(୧) ସେ ଗ୍ରହ୍ଣା ଜଡ ନୋହିଲେ ବିଶେଷ, ବଳିଷ୍ଠ ମାନେ ଦୁର୍ଜ୍ଞେୟ ଏସାମାନ୍ୟ, ମହାଜନ ମାନେ ସମୁଦ୍ର ପରି ଦୁର୍ଦ୍ଧର୍ଷ ଏବିଶେଷ ।

(୨) ଯମୁନା ତୀର ତମାଲ ପ୍ରଭୃତି ନୀଳିମାର ଉତ୍କର୍ଷର ହେତୁ ନୋହେ କେବଳ ଉକ୍ତିର ଚାତୁର୍ଯ୍ୟମାତ୍ର ।

ସମ୍ଭାବନାଲଂକାର

ଏପରି ହୋଇଲେ କାର୍ଯ୍ୟ ହୁଅନ୍ତା ଏପରି ।
ଏହୁ ସମ୍ଭାବନା ଅନ୍ୟ ସିଦ୍ଧି ଅନୁସରି । ୧୧୦ ।
ଯେବେ ଶେଷ ବକ୍ତା ହେବେ ତୁମ୍ଭ ଗୁଣମାନ ।
କୁହା ଯିବେ ବର୍ଣ୍ଣିବାକୁ କ୍ଷମ ନାହିଁ ଆନ । ୧୧୧ ।

ମିଥ୍ୟାଧ୍ୟବସିତାଲଂକାର

କିଛୁ ମିଥ୍ୟା ସିଦ୍ଧି ପାଇଁ ମିଥ୍ୟାନ୍ତର ଯେବେ ।
ହୋଏ ମିଥ୍ୟାଧ୍ୟବସିତ ଅଲଂକାର ତେବେ । ୧୧୨ ।
ଖ ପୁଷ୍ପ ମାଳା ବହିବ ଯେବେ ଅଙ୍ଗେଜନ ।
ବେଶ୍ୟା ବଶୀକରଣରେ ହୋଇବ ଭାଜନ ।୧୧୩। (୧)

ଲଳିତାଲଂକାର

ପ୍ରସ୍ତୁତାର୍ଥିରେ ବାକ୍ୟାର୍ଥି ପ୍ରତିବିମ୍ବ ଯେବେ ।
ବର୍ଣ୍ଣିତ ହୋଏ ଲଳିତ ଅଲଂକାର ତେବେ । ୧୧୪ ।

---

(୧) ବେଶ୍ୟା ବଶୀକରଣ ମିଥ୍ୟାତ୍ତ୍ୱ ସିଦ୍ଧି ନିମିତ୍ତ ଖ ପୁଷ୍ପ ମାଳା ଧାରଣ ରୂପ ମିଥ୍ୟାନ୍ତର କଳ୍ପନା ।

ଙ୍କ କହୁବା ବୁଦ୍ଧିହୀନ ମନୁଷ୍ୟ ବଚ୍ଚର ।
ସେରୁ ଇଚ୍ଛା କରୁଅଛି ଗଲାନତ ନୀର ।୧୧୫।(୧)

ପ୍ରହର୍ଷିଣାଲଂକାର

ଉପାୟ ସିଦ୍ଧ୍ୟଥି ଯତ୍ନେ ଶିଘ୍ରଫଳ ଯେବେ ।
ଲବ୍ଧହୁଏ ପ୍ରହର୍ଷିଣ ଅଳଂକାର ତେବେ ।୧୧୬।
ନିଧି ଅଞ୍ଜନ ନିମିତ୍ତ ଔଷଧି ଖନନେ ।
ନିଧିର ଲାଭ ହୋଇଲା ଭାଗ୍ୟ ସେହିସ୍ଥାନେ ।୧୧୭।(୨)

ବିଷାଦନାଲଂକାର

ଇଷ୍ଟ କରୁଥାଥି ଲାଭ ବିଷାଦ ହୁଅଇ ।
ଦୀପ ଦୀପ୍ତକର ବୋଲୁଁ ନର୍ବା ପିତ୍ତ ହୋଇ ।୧୧୮।

---

(୧) ଯୌବନ ଗଲା ଉତ୍ତାରୁ ବିବାହ ହେବାକୁ ଇଚ୍ଛା କରୁଅଛି ଏହା ନ କହି ପାଣି ଗଲା ଉତ୍ତାରୁ ବନ୍ଧ ବାନ୍ଧୁଅଛି ବୋଲି ବାକ୍ୟାର୍ଥିର ପ୍ରତିବିମ୍ବ ବର୍ଣ୍ଣିତ ହେଲା ।

(୨) ନିଧି ଦେଖିବା ନିମିତ୍ତ ଅଞ୍ଜନ ନିର୍ମାଣ କରିବାକୁ ଔଷଧି ଖନନ ସ୍ଥାନରେ ନିଧି ପ୍ରାପ୍ତ ହେଲା ।

# ଅଲଙ୍କାର ଚନ୍ଦ୍ରିକା

## ଉଲ୍ଲାସାଲଂକାର

ଏକ ବ୍ୟକ୍ତି ଗୁଣ ଦୋଷେ ଅନ୍ୟଗୁଣ ଦୋଷ ।
କଥନ ହୋଇଲେ ତହିଁ ହୁଅଇ ଉଲ୍ଲାସ । ୧୧୯ ।
ସାଧ୍ୱୀନାରୀ ସ୍ନାନ କଲେ ସୁ ପବନ ହେବ ।
ଏମନ୍ତ ରୂପ ଇଚ୍ଛାକୁ କରନ୍ତୁ ଜାହ୍ନବୀ । ୧୨୦ । (୧)

## ଅବଜ୍ଞାଲଂକାର

ସୁଗୁଣେ ଗୁଣାଭାବ ହେଲେ ଅବଜ୍ଞାହୁଅଇ ।
ଦୋଷେ ଦୋଷାଭାବ ହେଲେ ଅଲଂକାର ସେହି । ୧୨୧ ।
ସମୁଦ୍ରରୁ ଘଟଃ ଅସେ ଅଳ୍ପ ବାର ଘେନ ।
ପଦ୍ମ ମୁଦ୍ରିତ ହୋଇଲେ ଚନ୍ଦ୍ରର କି ହାନି । ୧୨୨ ।(୨)

---

( ୧ ) ଏଠାରେ ସାଧ୍ୱୀ ସ୍ତ୍ରୀର ସାଧୁତାଗୁଣ ଦ୍ୱାରା ଜାହ୍ନବୀଙ୍କର ପବିତ୍ରତା ଲାଭ ।

( ୨ ) ସମୁଦ୍ରରେ ବହୁ ଜଳତାଗୁଣ ଥିଲେ ସୁଦ୍ଧା ଘଟ ନ ଅଣିପାରିବାରୁ ତାଠାରେ ଗୁଣାଭାବ ରହିଲା ; ପଦ୍ମ ମୁଦ୍ରିତ ହେବାରୁ ସେ ଦୂଷିତ ହେଲେ ମଧ୍ୟ

# ଅଲଂକାର ଚନ୍ଦ୍ରିକା

## ଅନୁଜ୍ଞାଲଂକାର

ଦୋଷ ପ୍ରାର୍ଥିନା ହୋଇଲେ ଗୁଣର ବଶ୍ୟରେ ।
ଅନୁଜ୍ଞା ଯେ ଅଲଂକୃତ ହୁଅଇ ସେଠାରେ । ୧୨୩ ।
ବାଭାମୃଙ୍କ ଉପକାର ମୋରେ କର୍ତ୍ତିହେଉ ।
ପ୍ରତ୍ୟୁପକାର କରଣେ ବିପତ୍ତି ନଥାଉ । ୧୨୪ । (୧)

## ଲେଶାଲଂକାର

ଦୋଷ ଗୁଣ ଦୁଇଠାରେ ଗୁଣ ଦୋଷ ଯହିଁ ।
କଳ୍ପିତ ହୁଅଇ ଲେଶ ଅଲଂକାର ତହିଁ । ୧୨୫ ।
ସ୍ୱେଚ୍ଛାଚାରୀ ହେଲେ ସର୍ବ ବିହଙ୍ଗମ ମାନେ ।
ବନ୍ଧନେ ପଡ଼ିଲୁ ଶୁକ ମଧୁର ବଚନେ । ୧୨୬ । (୨)

---

ଚନ୍ଦ୍ରଙ୍କର କୌଣସି ଦୋଷ ନାହିଁ ।

(୧) ମୋଠାରେ ବିପତ୍ତି ପଡ଼ିବାରୁ ତୁମ୍ଭେ ଉପକାରକଲ , ତୁମ୍ଭଠାରେ ପୁନର୍ବାର ବିପତ୍ତି ନ ପଡ଼ୁ ଯେଂମ୍ଭୁ ପ୍ରତ୍ୟୁପକାର ନ କରେଁ ଏହି ତାତ୍ପର୍ଯ୍ୟ ।

(୨) ମଧୁର ବଚନ କହି ବନ୍ଧନରେ ପଡ଼ିବାରୁ ଗୁଣରେ ଦୋଷ ।

# ଅଲଂକାର ଚନ୍ଦ୍ରିକା

ଗୁଣେ ଦୋଷ ଯଥା

ଦାତା ବୋଲନ୍ତି ତୁମ୍ଭଙ୍କୁ ବୃଥା ଲୋକେ ଲକ୍ଷ୍ୟ ।
ପୃଷ୍ଠ ନଦେଲ ଶତ୍ରୁକୁ ପରସ୍ତ୍ରୀରେ ବକ୍ଷ । ୧୨୭ । (୧)

ତଦ୍ଗୁଣାଲଂକାର

ସ୍ୱଗୁଣର ତ୍ୟାଗହୋଇ ଯେବେ ଅନ୍ୟଗୁଣ ।
ଗ୍ରହଣ ହୁଅଇ ତହିଁ ପ୍ରକାଶେ ତଦ୍ଗୁଣ । ୧୨୮ ।
ଏନାସା ମୌକ୍ତିକ ଲଭି ଅଧରରୁ ରାଗ ।
ସୁଷମାକୁ ପାଉ ଅଛି ଯଥା ପଦ୍ମରାଗ । ୧୨୯ । (୨)

ପୂର୍ବରୂପାଲଂକାର

ସ୍ୱଗୁଣକୁ ଛାଡି ପୁଣି ସ୍ୱଗୁଣ ଲଭରେ ।
ପୂର୍ବରୂପ ଅଲଂକୃତ ହୁଅଇ ସେ ଠାରେ । ୧୩୦ ।

---

( ୧ ) ଶତ୍ରୁକୁ ପୃଷ୍ଠ ନ ଦେବା ପରସ୍ତ୍ରୀକୁ ବକ୍ଷନ ଦେବା ଗୁଣରେ ଦୋଷ ହେଲା ।

( ୨ ) ମୌକ୍ତିକ, ଅପଣା ଗୁଣ ଛାଡି ଅଧରର ରାଗକୁ

# ଅଳଂକାର ଚନ୍ଦ୍ରିକା

ହରକଣ୍ଠ କାନ୍ତି ଯୋଗୁଁ ଶେଷ ସେ ଅଶୀତ ।
ହୋଇ ଭୂମ୍ୟ ଯଶ ଦ୍ୱାରା ହେଲେ ଧବଳିତ । ୧୩୧ ।

## ଅତଦ୍ଗୁଣାଳଂକାର

ଅନ୍ୟଗୁଣ ଅସ୍ୱୀକାରେ ଅତଦ୍ଗୁଣ ଖ୍ୟାତ ।
ମୋର ଗୃହୀ ଚନ୍ଦ୍ରେରଞ୍ଜ ନୋହିଲୁ ଭୁରକ୍ତ । ୧୩୨ ।

## ଅନୁଗୁଣାଳଂକାର

ପର ଯୋଗେଁ ନିଜଗୁଣ ହୋଇଲେ ଅଧିକ ।
ଅନୁଗୁଣ ବୋଲି ତାକୁ କହନ୍ତି ବିବେକ । ୧୩୩ ।
କଟାକ୍ଷ ସଂସର୍ଗି ପାଇ ନୀଳୋତ୍ପଳମାନ ।
ଅତିନୀଳ ବୋଲି ତହିଁ ଲଭିଲେ ସମ୍ମାନ । ୧୩୪ ।

## ମୀଳିତାଳଂକାର

ସାଦୃଶ୍ୟରୁ ଭେଦ ଯହିଁ ନୋହେ ଅବଗତ ।
ସୁର ଜନମାନେ ତହିଁ କହନ୍ତି ମୀଳିତ । ୧୩୫ ।

---

ପାଇଲ ।

## ଅଲଂକାର ଚନ୍ଦ୍ରିକା

।କନେ ଥାଇଁ ଯେବେ ଦେଖିଲେ ନିପୁଣେ ।
ଷିତ ନୋହିଲା ଲାକ୍ଷା ଅରୁଣ ଚରଣେ । ୧୩୬ । (୧)

### ସାମାନ୍ୟାଲଂକାର

ନ୍ୟ ହୁଅଇ ଭେଦ ନୋହିଲେ କହନ୍ତ ।
ର କାନ୍ତା ମୁଖ ନୋହିଲା ଲକ୍ଷିତ । ୧୩୭ ।(୨)

### ଉନ୍ମୀଲିତାଲଂକାର

ଭେଦ ସ୍ଫୁର୍ତ୍ତି ବ୍ୟକ୍ତ ହେଲେ ହୋଏ ଉନ୍ମୀଲିତ ।
ତୁମ୍ଭ ଯଶେ ମଗ୍ନ ହିମଗିରି ଶୀତେ ଜ୍ଞାତ । ୧୩୮ । (୩)

---

( ୧ ) ନୈପୁଣ୍ୟଦ୍ୱାରା ଅରୁଣ ବର୍ଣ୍ଣ ଚରଣ ସାଦୃଶ୍ୟରୁ ଲାକ୍ଷାର ଭେଦ ଜଣା ନ ଗଲା ।

( ୨ ) କାନ୍ତା ମୁଖ ଏବଂ ପଦ୍ମ ଏଦୁହିଁଙ୍କର ଅଭେଦ ହେଲା ।

( ୩ ) ହିମ ଗିରି ତୁମ୍ଭ ଯଶ ଦ୍ୱାରା ଶୁକ୍ଳ ହେବାରୁ କେବଳ ଶୀତ ଦ୍ୱାରା ଜଣାଗଲା ଏହି ମାତ୍ର ଭେଦ ସ୍ଫୁର୍ତ୍ତି ।

ବିଶେଷକାଲଂକାର

ବିଶେଷ ପ୍ରକଟ ହେଲେ ଜାଣ ବିଶେଷକ ।
କାକ କୃଷ୍ଣ ପିକ କୃଷ୍ଣ ବସନ୍ତ ଭେଦକ । ୧୩୯ ।

ଚିତ୍ରୋତ୍ତରାଲଂକାର

ପ୍ରଶ୍ନ ଉତ୍ତର ଅଭେଦେ ଚିତ୍ରୋତ୍ତର ୧
ଯଥା କାକାଳୀ ଏ ପଦ ପ୍ରଶ୍ନୋତ୍ତର ଧାମ (୨)

ସ୍ୱଭାବୋକ୍ତ୍ୟଲଂକାର

ସ୍ୱଭାବ ବର୍ଣ୍ଣନ ହେଲେ ସ୍ୱଭାବୋକ୍ତି ହୋଇ ।
ଦେଖ ମୃଗ, ଚଳନେତ୍ର ସ୍ତବ୍ଧ କର୍ଣ୍ଣେ ରହି । ୧୪୧ ।

ଅତ୍ୟୁକ୍ତ୍ୟଲଂକାର

ଅତି ଔଦାର୍ଯ୍ୟାଦି ଯୋଗେ ହୁଅଇ ଅତ୍ୟୁକ୍ତି ।
ଯହିଁ ଅଭୂତ ବିଷୟ ବର୍ଣ୍ଣିତ ହୁଅନ୍ତି । ୧୪୨ ।
ତୁମ୍ଭ ପ୍ରତାପ ଅନଳେ ବାରିଧି ଶୋଷିତ ।
ଅରିନାରୀ ନେତ୍ର ଜଳେ ହୋଇଲା ପୂରିତ । ୧୪୩ ।

ନିରୁକ୍ତ୍ୟଲଂକାର
ଯୋଗେ ଅନ୍ୟାର୍ଥ କଳ୍ପନେ ହୁଅଇ ନିରୁକ୍ତି ।
ଏବେହୁମୂଢାରେ ହେଲ ଦୋଷାକର ଭ୍ରାନ୍ତ । ୧୪୪ ।
ହେତ୍ୱଲଂକାର
ହେତୁ ହେତୁମନ୍ତ ଐକ୍ୟେହେତୁ ଅଲଂକାର ।
ଶ୍ରୀରାମଙ୍କ କୃପା , ଲକ୍ଷ୍ମୀ ବିଳାସ ବିଗ୍ରହ । ୧୪୫ । (୧)
ସମାପ୍ତ

(୧) ଶ୍ରୀରାମଙ୍କ କୃପା , ହେତୁ ; ସେହି କୃପା , ଲକ୍ଷ୍ମୀଙ୍କର ବିଳାସ ହେବାରୁ ହେତୁମନ୍ତ ହେଲ ।

# ବିଜ୍ଞାପନ

ନିମ୍ନ ଲେଖିତ ପୁସ୍ତକମାନ ସ୍ୱାକ୍ଷରକାରୀଙ୍କ ନିକଟରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି ।

| ପୁସ୍ତକର ନାମ | ଏବଂ ମୂଲ୍ୟ |
|---|---|
| ଚଣ୍ଡୀ ( ଟୀକା ଏବଂ ଭାଷା ସହିତ ) | ଟ ୧ ୫ |
| ଯାତ୍ରୀଶିକ୍ଷା ( ସ୍ତ୍ରୀମାନଙ୍କର ଆବଶ୍ୟକ ) | ଟ ୦ ।୵ |
| ବାମଣ୍ଡା ଦର୍ଶନ ... ... ... | ଟ ( ୭ |
| ମାତୃବିଳାପ ... ... ... ... | ଟ ( ୭ |
| ଅବନା ରସତରଙ୍ଗ ( ଅର୍ଥସହିତ ) | ଯନ୍ତ୍ରସ୍ଥ |

ଗ୍ରହଣାକାଂକ୍ଷୀ ମାନେ ପୁସ୍ତକର ମୂଲ୍ୟ ଏବଂ ଡାକମାସୁଲ ପଠାଇ ପତ୍ର ଲେଖିଲେ ଅବିଳମ୍ବେ ପ୍ରାପ୍ତହେବେ ।

ଶ୍ରୀ ନୀଳମଣି ବିଦ୍ୟାରତ୍ନ
ବାମଣ୍ଡା । } ୭ । ୧୦ । ୮୭